ନନ୍ଦ ଦାସ କୃତ

# ଭ୍ରମର ଗୀତ

ଉଦ୍ଧବ-ଗୋପୀ-ଶ୍ରୀକୃଷ୍ଣ ବୃତ୍ତାନ୍ତ

## ପଦ୍ୟାନୁବାଦ



ଡକ୍ଟର ଦିଗରାଜ ବ୍ରହ୍ମା

ନନ୍ଦ ଦାସ କୃତ

# ଭ୍ରମର ଗୀତ

ଉଦ୍ଧବ-ଗୋପୀ-ଶ୍ରୀକୃଷ୍ଣ ବୃତ୍ତାନ୍ତ

## ପଦ୍ୟାନୁବାଦ



ଡ଼କ୍ଟର ଦିଗରାଜ ବ୍ରହ୍ମା

ନନ୍ଦଦାସଙ୍କ ରଚିତ :

# ଭ୍ରମର ଗୀତ

*ପଦ୍ୟାନୁବାଦ:*

ଡ଼କ୍ଟର ଦିଗରାଜ ବ୍ରହ୍ମା

ରୁଦ୍ରପୁର ଛଟିଆ, କଟକ

*ପ୍ରକାଶିକା :*

ଶ୍ରୀମତୀ ଜ୍ୟୋତ୍ସ୍ନାରାଣୀ ବ୍ରହ୍ମା

୧୬୫୭, ମହାବୀର ବିହାର

ପଟିଆ ରେଳ ଷ୍ଟେସନ ପାଖ

ପୋଷ୍ଟ : କଳା ରାହଙ୍ଗ, ଭାୟା - କିଟସ୍, ଭୁବନେଶ୍ୱର-୨୪

ଦୂରଭାଷା : ୦୬୭୪ - ୨୭୨୫୦୦୬

*ମୁଦ୍ରଣ :* ଶ୍ରୀ ନୀଳକଣ୍ଠ ପ୍ରିଣ୍ଟର୍ସ

୧୬, ଭୌମ ନଗର, ୟୁନିଟ-୪, ଭୁବନେଶ୍ୱର-୧

*ପ୍ରକାଶନ :* ୧ ଜାନୁୟାରୀ, ୨୦୦୭

*ମୂଲ୍ୟ :* ଟ୧୦ଙ୍କା ମାତ୍ର



## BHRAMARA GEETA

***Composed by :***
**KABI NANDA DAS**

***Oriya Version:***
**DR. DIGARAJ BRAHMA**
At/Po : Rudrapur
Via : Chhatia, Dist : Cuttack
Tel. : 0674-2725006

***Publisher :***
**Smt. JYOTSNARANI BRAHMA**
1657, Mahavir Vihar
Near Patia, Railway Station
Po. : Kalarahanga, Via : KIITS
Bhubaneswar - 751024

**Printed at : Shree Nilakantha Printers**
16, Bhouma Nagar, Unit-4, Bhubaneswar

***1st Edition*** January 1, 2007

***Price*** - Rs. 10/- only

# ଉତ୍ସର୍ଗ

ମୋର ଧର୍ମପ୍ରାଣ ପୂଜ୍ୟ ପିତା **ସ୍ୱର୍ଗୀୟ ଲକ୍ଷ୍ମଣ ଦେବ ଶର୍ମା** ଓ ଧର୍ମପ୍ରାଣା ମାତା **ସ୍ୱର୍ଗୀୟା ଜାନକୀ ଦେବୀଙ୍କ** କରକମଳରେ କବି ନନ୍ଦଦାସଙ୍କ ରଚିତ ଓ ଓଡ଼ିଆ ଭାଷାରେ ପ୍ରସ୍ତୁତ ଉକ୍ତ '**ଭ୍ରମର ଗୀତ**' ର ପଦ୍ୟାନୁବାଦ ଅର୍ପିତ ହେଲା ।

ଆଶା, ପିତୃପୁରୁଷଙ୍କ କୃପା ଆଧ୍ୟାତ୍ମିକ ଚେତନା ପ୍ରସାରଣରେ ସହାୟକ ହେବ ।

ବିନୟାବନତ

**ଦିଗରାଜ**

# ମୁଖବନ୍ଧ

ହିନ୍ଦୀ ସାହିତ୍ୟର ଭକ୍ତିମାର୍ଗର କବି ନନ୍ଦଦାସଙ୍କ କୃତ 'ଭ୍ରମର ଗୀତ' ଉଦ୍ଧବ-ଗୋପୀ-ଶ୍ରୀକୃଷ୍ଣ ବୃତ୍ତାନ୍ତ ଉପରେ ପର୍ଯ୍ୟବସିତ । ଗୋପୀ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଥିବା ପ୍ରେମ ସଂପର୍କ ଯେ କେତେ ନିବିଡ଼, ଏକାନ୍ତ ଓ ଏକାକାର ତାହା କବି ଉକ୍ତ ପ୍ରେମରସମୟ ଗୀତ ମାଧ୍ୟମରେ ପରିବେଷଣ କରି ଅଛନ୍ତି ।

ଶ୍ରୀକୃଷ୍ଣଙ୍କ ପ୍ରିୟ ଭକ୍ତ ହେଉଛନ୍ତି ଉଦ୍ଧବ । ସେ ସଖା ଶ୍ରୀକୃଷ୍ଣଙ୍କ ଅନୁରୋଧ କ୍ରମେ ବୃନ୍ଦାବନ କୁଞ୍ଜକୁ ଶ୍ୟାମଙ୍କ ସନ୍ଦେଶ ଘେନି ଯାଇଛନ୍ତି ଓ ତାଙ୍କର କୁଶଳ ବାର୍ତ୍ତା ନେଇ ମଧୁପୁରୀ ଫେରିଯିବାକୁ କହିଛନ୍ତି ।

ପ୍ରିୟତମ କୃଷ୍ଣଙ୍କ ନାମ ଶୁଣୁଶୁଣୁ ଗୋପୀଗଣ ଗୃହସ୍ମୃତି ଭୁଲି ଯାଇଛନ୍ତି । ସେ କୃଷ୍ଣଙ୍କ ପ୍ରିୟମିତ୍ର ଉଦ୍ଧବଙ୍କୁ ଅର୍ଦ୍ଧାସନ ପରେ ବସାଇ ପରିକ୍ରମା କରିଛନ୍ତି ଓ ମଧୁପୁରରେ ତାଙ୍କର ସଖା କିପରି ଅଛନ୍ତି ତା'ର କୁଶଳ ବାର୍ତ୍ତା ଦେବାକୁ କହିଛନ୍ତି । ରାମକୃଷ୍ଣ ବେନି ଭାଇ ଓ ଯଦୁବଂଶର ସମସ୍ତ ସଂପର୍କୀୟ ଖୁବ ଭଲରେ ଅଛନ୍ତି ବୋଲି ଉଦ୍ଧବ କହିଛନ୍ତି । ସେ ବ୍ରଜର କୁଶଳବାର୍ତ୍ତା ପଚାରି ଆସିଛନ୍ତି ଓ ଶ୍ରୀକୃଷ୍ଣ ଖୁବ୍ ଶୀଘ୍ର ଆସି ତାଙ୍କ ସହିତ ମିଶିବେ ବୋଲି କହିଛନ୍ତି ।

କୃଷ୍ଣଙ୍କ ଖବର ପାଇବା ମାତ୍ରେ ସବୁ ଗୋପାଙ୍ଗନା କୃଷ୍ଣଙ୍କ ରୂପ ସ୍ମରଣ କରିଛନ୍ତି । ସେମାନଙ୍କ ଅଙ୍ଗରେ ଅଫୁରନ୍ତ ଶିହରଣ ଦେଖାଯାଇଛି ଓ କ୍ଷଣିକ ମଧ୍ୟରେ ମୂର୍ଚ୍ଛା ଯାଇଛନ୍ତି । ଉଦ୍ଧବ ଜଳ ସିଞ୍ଚି ସିଞ୍ଚି ସେମାନଙ୍କୁ ପୂର୍ବବତ୍ ଫେରାଇ ଆଣିବାକୁ ଚେଷ୍ଟା କରିଛନ୍ତି । ଧୀରେ ଧୀରେ ପ୍ରବୋଧନା ଦେଇ କହିଛନ୍ତି ଯେ କୃଷ୍ଣ ସେମାନଙ୍କ ଠାରୁ ଦୂରରେ ନାହାଁନ୍ତି । ସେଥିପାଇଁ ସେମାନେ ଜ୍ଞାନ ଚକ୍ଷୁ ମାଧ୍ୟମରେ କୃଷ୍ଣଙ୍କୁ ସଂଦର୍ଶନ କରିବା ଉଚିତ । ସେ ହେଉଛନ୍ତି ନିର୍ଗୁଣ, ବ୍ରହ୍ମର ଜ୍ୟୋତିରୂପ, ତାଙ୍କର ହସ୍ତ, ପଦ, କର୍ଣ୍ଣ ନାହିଁ, ପିତାମାତା ନାହାଁନ୍ତି, ଅଖିଳ ବ୍ରହ୍ମାଣ୍ଡ ତାଙ୍କଠାରୁ ଉତ୍ପତ୍ତି କେବେଳ ତାଙ୍କ ଠାରେ ମିଶିବା ପାଇଁ । ଏମିତି ଅନେକ କିଛି କହି ଉଦ୍ଧବ ଗୋପୀମାନଙ୍କୁ ବୁଝାଇବାକୁ ଚାହିଁଛନ୍ତି ।

ମାତ୍ର ମିତ ଉଦ୍ଧବଙ୍କ କଥାରେ ଗୋପୀମାନେ ଭୁଲି ନାହାଁନ୍ତି । ସେମାନେ ଉଦ୍ଧବଙ୍କୁ ବରଂ ପ୍ରଶ୍ନ କରିଛନ୍ତି ଯେ କୃଷ୍ଣ ବ୍ରହ୍ମର ଜ୍ୟୋତିରୂପ ବୋଲି ସେ ଏ ତତ୍ତ୍ୱ କେଉଁଠୁ ପାଇଲେ ? ତାଙ୍କର ଯଦି ମୁଖ ନ ଥିଲା, ସେ ଲହୁଣୀ କିପରି ଖାଇଲେ; ପଦ ଯଦି ନ ଥିଲା ସେ

ଧେନୂବତ୍ସା ଧରି କିପରି ବନେ ବୁଲୁଥିଲେ, ଯଦି ହାତ ନ ଥିଲା, ତେବେ ଗୋବର୍ଦ୍ଧନ ଗିରି କିପରି ତୋଳି ଧରିଥିଲେ ?

ଏମିତି ଉଦ୍ଧବ ଓ ଗୋପୀଙ୍କ ମଧ୍ୟରେ କଥୋପକଥନ ସମୟରେ ଏକ ଭ୍ରମର କେଉଁଠୁ ଆସି ବ୍ରଜବନିତାଙ୍କ ଚତୁପାର୍ଶ୍ୱେ ହସି ହସି ଗୁଣୁଗୁଣୁ ଗୀତ ଗାଇ ପ୍ରବେଶ କରିଛି । ସେ ଗୋପୀଙ୍କ ପଦକୁ ରକ୍ତୋତ୍ପଳ ଭାବି ବସିଯିବାକୁ ଇଚ୍ଛା କରିଛି । ସତେ ଯେମିତି ଉଦ୍ଧବଙ୍କ ମନ ମଧୁପର ବେଶେ ସେଠାରେ ଆସି ପହଞ୍ଚିଅଛି !

ଭ୍ରମରକୁ ଦେଖି ପ୍ରତ୍ୟୁତ୍ତର ଭାବେ ଗୋପୀ ତର୍କବିତର୍କର ପ୍ରେମରସ ପୂର୍ଣ୍ଣ ସମ୍ଭାଷଣମୟ ବାର୍ତ୍ତା ଆରମ୍ଭ କରନ୍ତି । ତାଙ୍କର ପଦକୁ ସ୍ପର୍ଶ ନ କରିବା ପାଇଁ କହନ୍ତି । ଭ୍ରମର ନନ୍ଦ କିଶୋର କୃଷ୍ଣଙ୍କ ପରି ନିର୍ଲଜ୍ଜ, ପ୍ରେମୀ ବିଦ୍ଧକାରୀ, ମଥୁରାରୁ କ୍ଷୀର ଚୋରି କରି ବ୍ରଜପୁରକୁ ଆସିଛି ବୋଲି କହନ୍ତି । ଦ୍ୱିବିଧା ପ୍ରେମରେ ଗୋପୀମାନଙ୍କୁ ଦୂଷିତ କରିବା ନିମନ୍ତେ ପ୍ରୟାସ କରୁଛି ବୋଲି ଭ୍ରମର ପ୍ରତି ଅଭିଯୋଗ କରନ୍ତି । ଏହିପରି ଭାବେ ଗୋପୀଗଣ ଭ୍ରମରକୁ ତିରସ୍କାର କରିବାକୁ ଲାଗନ୍ତି । ଭ୍ରମର ନିଜେ ଗୁଣଅବଗୁଣ ଓ କପଟତାରେ ବନ୍ଧା ବୋଲି କହି ଗୋପୀଗଣ ଶ୍ରୀକୃଷ୍ଣଙ୍କୁ ସମରଣାପୂର୍ବକ କୁଳ ଲଜ୍ଜା ଭୁଲିଯାଅନ୍ତି । ତା'ପରେ ସେମାନଙ୍କର ପ୍ରାଣପ୍ରିୟ କୃଷ୍ଣଙ୍କୁ କରୁଣାମୟ ବୋଲି ସମ୍ବୋଧନ କରି ସେମାନଙ୍କୁ ରକ୍ଷା କରିବା ନିମନ୍ତେ ପ୍ରାର୍ଥନା କରନ୍ତି ।

ଗୋପୀମାନଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଏତାଦୃଶ ଭକ୍ତିଭାବ ଦେଖି ଉଦ୍ଧବଙ୍କର ମନରେ ଥିବା ସମସ୍ତ ଗ୍ଲାନି ଦୂରୀଭୂତ ହୁଏ । ତାଙ୍କ ମନରେ ଶ୍ରୀକୃଷ୍ଣଙ୍କୁ ପ୍ରାପ୍ତି ନିମନ୍ତେ ଜ୍ଞାନ ହିଁ ଏକ ମାତ୍ର ମାର୍ଗ ବୋଲି ଯେଉଁ ଧାରଣା ଥାଏ, ତାହା ଦୂରୀଭୂତ ହୁଏ । ସେ ପରମ କାରୁଣିକ କୃଷ୍ଣଙ୍କୁ ସୁମରଣା କରି ବ୍ରଜଦାଣ୍ଡର ଧୂଳି ହୋଇ 'ଯେ ଭକ୍ତ ଚରଣ ମୁନିଙ୍କୁ ଦୁର୍ଲଭ ସ୍ପର୍ଶ ତା'ର' ପାଇବା ନିମନ୍ତେ କାମନା କରନ୍ତି । ଏହିପରି ଏକ ପରିସ୍ଥିତିରେ ମଥୁରା ପ୍ରତ୍ୟାବର୍ତ୍ତନ ସମୟରେ କୃଷ୍ଣମିତ ଉଦ୍ଧବ କୃଷ୍ଣଙ୍କର ଗୁଣଭୁଲି ଗୋପୀଙ୍କ ଗୁଣ ବର୍ଣ୍ଣନା କରିବାକୁ ଲାଗନ୍ତି । ସଖା କୃଷ୍ଣଙ୍କୁ ଭେଟି ଗୋପୀଙ୍କ ପ୍ରତି ନିର୍ଦ୍ଦୟ ଆଚରଣ ପ୍ରଦର୍ଶନ ନ କରିବା ଲାଗି ପରାମର୍ଶ ପୂର୍ବକ କହନ୍ତି, ''ହେ ସଖା ! ତୁମେ ଗୋପପୁର ଛାଡ଼ି ବୃନ୍ଦାବନରେ ଯାଇ ରୁହ । ସେଠାରେ ଗୋପୀଙ୍କ ସୁଖ ପାଅ । ନଚେତ୍ ଗୋପୀ ସ୍ନେହ ଡ଼ୋରି ଛିଣ୍ଡିଗଲେ ତା'ର ପରିଣତି କ'ଣ ହେବ ତାହା ଥରେ କଳ୍ପନା କର ।''

ସଖା ଉଦ୍ଧବଙ୍କ କଥା ଶୁଣି କୃଷ୍ଣଙ୍କ ନୟନରେ ଅଶ୍ରୁ ଭରି ଆସେ । ଗୋପୀପ୍ରେମାବେଶେ ଶରୀରର ପ୍ରତି ଲୋମକୂପରେ ଗୋପଗୋଇ ଜାତ ହୁଅନ୍ତି । ସେ ଉଦ୍ଧବଙ୍କୁ କୁହନ୍ତି,''ହେ

ସଖା ! ତୁମକୁ ଗୋପୀଙ୍କ ଖବର ଜାଣିବା ନିମନ୍ତେ ବୃଥା ବ୍ରଜପୁରକୁ ପଠାଇଲି । ତୁମେ ସେଠାରୁ ଫେରି ଆସି ମୋର ଅବଗୁଣ କହି ବସିଲ । କିନ୍ତୁ ହେ ସଖା ! ତୁମେ ମନେରଖ, ଗୋପୀ ଓ କୃଷ୍ଣଙ୍କ ମଧ୍ୟରେ କୌଣସି ତଫାତ୍ ନାହିଁ ...''

ଏହା କହି କୃଷ୍ଣ ନିଜ ଶରୀରରୁ ଏକ ଗୋପୀ ଜାତ କରି ସଖା ଉଦ୍ଧବଙ୍କୁ ପ୍ରଦର୍ଶନ କରନ୍ତି । ସେ ଛବି ଦେଖି ଉଦ୍ଧବଙ୍କ ମନରେ ଥିବା ସଂଶୟ ଦୂରୀଭୂତ ହୁଏ । ଯେ କୃଷ୍ଣ ସେ ଯେ ଗୋପୀ ଏହା ବୁଝିବାକୁ ତାଙ୍କୁ ବେଶୀ ଡ଼େରି ହୁଏ ନାହିଁ ।

ଉପର୍ଯ୍ୟୁକ୍ତ ପୃଷ୍ଠଭୂମିକୁ ନେଇ କବି ନନ୍ଦଦାସ କୃଷ୍ଣପ୍ରେମମୟ ରସ ''ଭ୍ରମର ଗୀତ''ରେ ବର୍ଣ୍ଣନା କରି ଅଛନ୍ତି ।

୧୯୭୦ ମସିହାରେ ଅନୁବାଦକ ଉକ୍ତ 'ଭ୍ରମର ଗୀତ' ପଢ଼ିବାର ସୁଯୋଗ ପାଇଥିଲେ । ଏହାର ତତ୍ତ୍ୱ ଏତେ ସୁନ୍ଦର ଓ ଗ୍ରହଣଯୋଗ୍ୟ ଥିଲା ଯେ ସେ ତାକୁ ଓଡ଼ିଆରେ ଅନୁବାଦ କରିବାର ଲୋଭ ସମ୍ବରଣ କରିପାରି ନ ଥିଲେ । ଏହା ଥିଲା ଅନୁବାଦକଙ୍କ ପ୍ରତି ଏକ ଅଲୌକିକ ବିଭୁକୃପା ।

ଆଜି ସେହି ଅନୁବାଦ ଲୋକଲୋଚନକୁ ଆସି ପାରିଥିବା ହେତୁ ବହୁଦିନ ତଳର ଶ୍ରମ ସାର୍ଥକ ହେଲା ବୋଲି ଆଶ୍ୱାସନା ଲାଭ କରୁଛି । ଏହାର ପ୍ରକାଶନ ଦିଗରେ ନୀଳକଣ୍ଠ ପ୍ରେସର ବନ୍ଧୁ **ଶ୍ରୀଯୁକ୍ତ ସୁବୋଧ ଦାଶ**, ଉକ୍ତ ଅନୁଷ୍ଠାନର **ଶ୍ରୀମତୀ କୃଷ୍ଣପ୍ରିୟା ସାହୁ**, **ଧର୍ମପତ୍ନୀ ଶ୍ରୀମତୀ ଜ୍ୟୋତ୍ସ୍ନାରାଣୀ ବ୍ରହ୍ମା, ପୁତ୍ରବଧୂ ସୌମ୍ୟା ସାରସ୍ୱତା**, ଜୟପୁର ଡ଼ି.ଆଇ.ଇ.ଟି. ର ପୂର୍ବତନ ଅଧ୍ୟକ୍ଷ **ଶ୍ରୀଯୁକ୍ତ କୈଳାସ ଚନ୍ଦ୍ର ଗୁରୁ** ଓ ବହୁ ଶୁଭେଚ୍ଛୁ ବନ୍ଧୁଙ୍କୁ ସେମାନଙ୍କ ସାହାଯ୍ୟ ନିମନ୍ତେ ସାଧୁବାଦ ଜଣାଉଛି ।

ଆଶା, ଉକ୍ତ ପୁସ୍ତକଟି ଓଡ଼ିଶାର ସାଂସ୍କୃତିକ ଓ ଧାର୍ମିକ ଜୀବନରେ ପ୍ରଭାବ ପକାଇବା ସହିତ ଆଦୃତ ହେବ ।

ଦିଗରାଜ ବ୍ରହ୍ମା

**ଜାନୁୟାରୀ ୧, ୧୯୦୭**
**ମହାବୀର ବିହାର**



॥ ଏକ ॥

ଉଦ୍ଧବ ବୋଲନ୍ତି ଉପଦେଶ ମୋର ଶୁଣ ସବୁ ବ୍ରଜବାଳା
ରୂପ ସ୍ୱଭାବର ଲାବଣ୍ୟ ପ୍ରତିମା ସର୍ବଗୁଣେ ଗୁଣଶୀଳା ॥
ପ୍ରେମ-ନିକେତନ ରସ ସ୍ୱରୂପିଣୀ
ସୁଖ ଶାନ୍ତି ପ୍ରଦାୟିନୀ
ଅତି ମନୋହର ବୃନ୍ଦାବନ କୁଞ୍ଜେ ଶ୍ୟାମ ସୁଧାବିଳାସିନୀ ॥

॥ ଦୁଇ ॥

ଶ୍ୟାମର ସନ୍ଦେଶ ଘେନି ଆସିଅଛି କହିବାକୁ ତୁମ ପାଶେ
ମିଳିନି ସୁଯୋଗ ଦେଖା କରିବାକୁ ପାଇନି ତ ମୁହିଁ ଲେଶେ ॥
ମନେ ଖୋଜୁଥିଲି ଭେଟିବାର ସ୍ଥଳୀ
ପାଇବି ଗୋପନଗରୀ
ଶ୍ୟାମର ଖବର ପାଶେ ଦେଇ ତାଙ୍କ ଫେରିବି ମୁଁ ମଧୁପୁରୀ ॥

॥ ତିନି ॥

ଶ୍ୟାମନାମ ଶୁଣୁ ଶୁଣୁ ବ୍ରଜବାଳା ଗୃହ ସ୍ମୃତି ଗଲେ ଭୁଲି
ପ୍ରେମରୂପୀ ଲତା ପ୍ରିୟତମ ବୃକ୍ଷେ ଆନନ୍ଦେ ଉଠିଲା ଫୁଲି ॥
ଅଙ୍ଗେ ଅଙ୍ଗେ ଖେଳେ କେତେ ଶିହରଣ
ନୟନରୁ ଝରେ ନୀର
ପ୍ରେମେ ଗଦ ଗଦ ଯେଣୁ ଗୋପାଙ୍ଗନା ମୁଖୁ ନ ସ୍ଫୁରଇ ଗୀର ॥

॥ ଚାରି ॥

ଅର୍ଦ୍ଧାସନ ପରେ ଉଦ୍ଧବେ ବସାଇ ପରିକ୍ରମା କଲେ ଗୋପୀ
ଶ୍ୟାମସଖା ଜାଣି ଉଦ୍ଧବ ସେବାରେ ମନମୁନ ଗଲା ଲାଖି ॥
ଅଧରେ ଅଧରେ ମୃଦୁ ହସଭରି
ପଚାରନ୍ତି ଶ୍ୟାମ କଥା ।
କୁଶଳେ ଛନ୍ତିକି କୁହହେ ଉଦ୍ଧବ ମଧୁପୁରେ ତବ ସଖା ?

॥ ପାଞ୍ଚ ॥

ଉଦ୍ଧବ କୁହନ୍ତି ଶୁଣ ବ୍ରଜବାଳା ରାମକୃଷ୍ଣ ବେନି ଭାଇ
ସାଙ୍ଗ ସାଥିଧରି ଯଦୁବଂଶୀଯେତେ ଆନନ୍ଦେ ଅଛନ୍ତି ରହି ॥
ବ୍ରଜର କୁଶଳ ବାରତା ପଚାରି
ଆସିଛି ମୁଁ ତୁମପୁରେ
ଅଧୀର ନ ହୁଅ ଆହେ ବ୍ରଜବାଳା ଆସିବେ ଶ୍ୟାମ ଅଚିରେ ॥

॥ ଛଅ ॥

ମୋହନ ସନ୍ଦେଶ ଶୁଣି ଗୋପାଙ୍ଗନେ ସୁମରିଲେ କୃଷ୍ଣ ରୂପ
ଆନନ କମଳ ପୁଲକି ଉଠିଲା ଅଙ୍ଗେ ଅଙ୍ଗେ ପ୍ରେମଧୂପ ॥
ପ୍ରେମେ ଗଦ ଗଦ ହୋଇ ବ୍ରଜବାଳା
ମୂର୍ଚ୍ଛାଗଲେ ଭୂମିପରେ
ଜଳ ସିଞ୍ଚି ସିଞ୍ଚି ପ୍ରବୋଧି ଉଦ୍ଧବ କହନ୍ତି ବଚନ ଧୀରେ ॥

॥ ସାତ ॥

କୃଷ୍ଣ ତୁମଠାରୁ ନାହାଁନ୍ତି ଦୂରରେ ଜ୍ଞାନ ଚକ୍ଷୁ ଫେଡ଼ି ଦେଖ
ଅଖିଳ ବିଶ୍ୱରେ ଦେଖ ନିରନ୍ତରେ କୃଷ୍ଣମୟ କୃଷ୍ଣ ରୂପ ॥
ଲୁହାଦାରୁ ଅବା ପାଷାଣ ମୂରତି
ଜଳସ୍ଥଳ ସେ ଆକାଶ
ସଚରାଚରରେ ବିରାଜଇ ସେହି ଜ୍ୟୋତି ବ୍ରହ୍ମ ପରକାଶ ॥

॥ ଆଠ ॥

ଉଦ୍ଧବର ବାଣୀ ଶୁଣି ବ୍ରଜବାଳା କହନ୍ତି ହେ ଶ୍ୟାମ ମିତ
କିଏ ସେ ବ୍ରହ୍ମର ଜ୍ୟୋତିରୂପ କୁହ କାହୁଁ ଜାଣିଲୁ ଏ ତତ୍ତ୍ୱ ?
ଶ୍ୟାମ ସୁନ୍ଦର ସେ ବଡ଼ ମନୋହର
ପ୍ରେମ ମୂର୍ତ୍ତି ଅବତାର
ତନୁ ମନ ତାଙ୍କୁ ସମର୍ପି ଦେଉଛୁ ସରଳା ଗୋପୀନିକର ॥

॥ ନଅ ॥

ଶୁଣ ବ୍ରଜବାଳା କହଇ ଉଦ୍ଧବ ସଗୁଣ ସର୍ବେ କହନ୍ତି
କିନ୍ତୁ ବ୍ରହ୍ମରୂପ ନିର୍ଗୁଣ ନିର୍ଲେପ ସଗୁଣେ ଆରୋପିଥାନ୍ତି ॥
ନିରାକାର କୃଷ୍ଣ ନାହିଁ ତା' ତ୍ରିଗୁଣ
ନାହିଁ ହସ୍ତ ପଦ କର୍ଣ୍ଣ ।
ନିରନ୍ତର ଜ୍ୟୋତି ପ୍ରକାଶ ସ୍ୱରୂପ ସକଳ ବିଶ୍ୱର ପ୍ରାଣ ॥

॥ ଦଶ ॥

ଶୁଣ ଶ୍ୟାମ ସଖା ମୁଖ ଯଦି ନାହିଁ ଲହୁଣୀ କିଏ ଖାଇଲା
ପାଦ ଯଦି ନାହିଁ ଧେନୂ ବସ୍ଛା ସଙ୍ଗେ କିଏ ବନେ ବୁଲୁଥିଲା ॥
ଯଦି ଆଖି ନାହିଁ ନୟନେ କଜ୍ଜଳ
କିଏ ସେ ଲଗାଇ ଥିଲା
ଯଦି ହାତ ନାହିଁ ଗୋବର୍ଦ୍ଧନ ଗିରି କିଏ ତୋଳି ଧରିଥିଲା ?

॥ ଏଗାର ॥

ଶୁଣ ବ୍ରଜବାଳା କୃଷ୍ଣ ଯା'ରେ କୁହ ତା'ର ପିତାମାତା ନାହିଁ
ଅଖିଳ ବ୍ରହ୍ମାଣ୍ଡ ତା'ଠାରୁ ଉତ୍ପତ୍ତି ତା'ଠାରେ ମିଶିବା ପାଇଁ ॥
ସେହି ପରଂବ୍ରହ୍ମ ଲୀଳା ଅବତାର
କୃଷ୍ଣ ଶ୍ୟାମରୂପ ଧରି
ଜନମ ଲଭିଛି ପାଦଧୂଳି ତା'ର ଯୋଗବଳେ ଦିଏ ହରି ॥

॥ ବାର ॥

ଯୋଗ ପଥେ ଯିଏ ଚାଲିଛି ଉଦ୍ଧବ ଯୋଗକଥା ତା'ରେ କୁହ
ପ୍ରେମର ସହିତ ଆମ ପାଶେ ଖାଲି କୃଷ୍ଣ ଗୁଣ ଗାଇଯାଅ ॥
ଆମ ନେତ୍ର-ବାଣୀ-ମନ ପ୍ରାଣସବୁ
କୃଷ୍ଣ ଗୁଣେ ଯାଏ ଖେଳି
ପ୍ରେମର ପୁରୁଷ ଛାଡ଼ି ଦେଇ କିଏ ସାଉଁଟି ବସିବ ଧୂଳି ॥

॥ ତେର ॥

ମୂଲ୍ୟହୀନ ଧୂଳି ଶଙ୍କର କାହିଁକି ମସ୍ତକେ ଚଢ଼ାନ୍ତି ନିତି
ଧରା ଲୋକେ ଜନ୍ମ କରିଗଲେ କର୍ମ ହରିପଦ ହେବ ପ୍ରାପ୍ତି ॥
ଶରୀର ଆମର ସିନା ଧୂଳିମୟ
ଧୂଳିମୟ ଏ ବ୍ରହ୍ମାଣ୍ଡ
ଚତୁର୍ଦ୍ଦଶ ଲୋକ ସପ୍ତଦ୍ୱୀପମାନ ଧୂଳିମୟ ନବ ଖଣ୍ଡ ॥

॥ ଚଉଦ ॥

କର୍ମ ଅଧିକାରୀ କର୍ମଧୂଳି କଥା ଜାଣେ ସିନା ଶ୍ୟାମ ସଖା
କର୍ମର ଧୂଳିରେ ପ୍ରେମର ଅମୃତ ମିଶାଏ ସେ ମନ ଲେଖା ॥
ଯାବତ୍ ଶ୍ରୀହରି ହୃଦୟରେ ନାହିଁ
ସେ ପର୍ଯ୍ୟନ୍ତ କର୍ମ ଆଏ
କର୍ମର ଆବନ୍ଧେ ମାୟାଜାଲେ ଜୀବ ଶ୍ରୀହରି ବିମୁଖ ହୁଏ ॥

॥ ପନ୍ଦର ॥

କର୍ମ ନିନ୍ଦା କାହିଁ କର ଗୋପାଙ୍ଗନେ କର୍ମରେ ସଦ୍‌ଗତି ହୁଏ
କର୍ମଠାରୁ ବଳି ତିନି ଭୁବନରେ ଆନଶକ୍ତି ଅଛି କିଏ ?
କର୍ମର କାରଣ ଜୀବର ଉତ୍ପତ୍ତି
କର୍ମପୁଣି କରେ ନାଶ
କର୍ମଲାଗି ମୁକ୍ତି ମିଳେ ବ୍ରହ୍ମଶକ୍ତି ବଇକୁଣ୍ଠ ଧାମେ ବାସ ॥

॥ ଷୋହଳ ॥

ଶୁଣ ହେ ଉଦ୍ଧବ ମତି ତୁମ ଭ୍ରମ କର୍ମ ନେଇ ପାପପୁଣ୍ୟ
ଲୁହାର ବନ୍ଧନ ସମ ପାପ କର୍ମ ପୁଣ୍ୟର ବନ୍ଧନ ସ୍ୱର୍ଣ୍ଣ ॥
ଭଲ କର୍ମେ ଜୀବ ଲଭେ ସ୍ୱର୍ଗବାସ
ନୀଚକର୍ମେ କରେ ଭୋଗ
ଶୁଦ୍ଧ ପ୍ରେମ ବିନା ଜୀବ ଭୋଗିଚାଲେ ବିଷୟ ବାସନା ରୋଗ ॥

॥ ସତର ॥

ଶୁଣ ବ୍ରଜବାଳୀ କର୍ମଯଦି ନୀଚ ଯୋଗୀ କାହିଁ ଯୋଗକରେ
ପଦ୍ମାସନ ବଳେ କଠୋର ସାଧନେ ଇନ୍ଦ୍ରିୟକୁ ବସ କରେ ॥
ଅଗ୍ନି ବ୍ରହ୍ମେ ଜଳି ବିକାରକୁ ଜାଳି
ସମାଧି ଘେନଇ ଯୋଗୀ
ଜୀବ ସହ ବ୍ରହ୍ମ ଏକାକାର ହୁଏ ଆତ୍ମା ପରମାତ୍ମା ଜ୍ୟୋତି ॥

॥ ଅଠର ॥

ଶୁଣ ଶ୍ୟାମ ସଖା ଯୋଗୀ ବ୍ରହ୍ମ ଭଜେ, ବ୍ରହ୍ମ ନିଜରୂପ ଜାଣେ
ପ୍ରେମର ପିୟୁଷ କରି ହୃଦେପାନ ଶ୍ୟାମ ରୂପ ହୃଦେ ଭଣେ ॥
ନିର୍ଗୁଣ ବ୍ରହ୍ମର କିଛି ରୂପ ନାହିଁ
କିଏ ସେ ବିଶ୍ୱାସ ଯିବ
ଘରେ ଆସିଥିବା ସର୍ପ ପୂଜା ଛାଡ଼ି କିଏ ବିଲେ ଧାଉଁଥିବ ?

॥ ଊଣେଇଶ ॥

ଶୁଣ ବ୍ରଜବାଳା ସଗୁଣଯେ ବ୍ରହ୍ମ ବେଦ ନେତି କାହିଁ କହେ
ନିର୍ଗୁଣ ଉପରେ ସଗୁଣ ଆରୋପ ଉପନିଷେଦରେ ଥାଏ ॥
ବେଦ ପୁରାଣକୁ ଖୋଜି ଖୋଜି କିଏ
ପାଇ ନାହିଁ ଗୁଣ ଏକ
ଯଦି ବ୍ରହ୍ମ ତୁମ ଅଟେ ଗୁଣ ଯୁକ୍ତ କେ କରେ ଆକାଶ ଟେକ ॥

॥ କୋଡ଼ିଏ ॥

କିପରି ଉଦ୍ଧବ ଗୁଣହୀନ ହରି ଗୁଣାତ୍ମକ ସୃଷ୍ଟି କରେ
ମଞ୍ଜିବିନା କେବେ ଉପୁନ ହେଲାଣି ବୃକ୍ଷ ଅବା କେଉଁଠାରେ ॥
ତେଣୁ ପରଂବ୍ରହ୍ମ ପ୍ରତିବିମ୍ବ ସଦା
ପଡ଼େ ମାୟା ଦରପଣେ
ମାୟା ଛାଡ଼ିଗଲେ ଗୁଣହୀନ ବ୍ରହ୍ମ ଦରଶନ ଦିଏ ଆପେ ॥

॥ ଏକୋଇଶ ॥

ଶୁଣ ବ୍ରଜବାଳି ! ମାୟା ଗୁଣ ସାଥେ ବ୍ରହ୍ମ ଗୁଣ ନୁହେଁ ସମ
ସତ-ରଜ-ତମ ସହିତେ ତୁଳନା କିପରି ସଚ୍ଚିଦାନନ୍ଦ ?
ଯା'ର ଗୁଣ ରୂପ ବେଦ ଓ ନିଷଦ
ଭେଦ କରି ପାରିନାହିଁ
ନିର୍ଗୁଣ ରୂପରେ ସବୁଦିନ ପାଇଁ ଯାଇଛନ୍ତି ସିଏ ରହି ॥

॥ ବାଇଶ ॥

ଶ୍ୟାମଙ୍କ ମୁଖରୁ ବେଦର ଉତ୍ପତ୍ତି ବେଦ ହିଁ ଶ୍ୟାମ ସ୍ୱରୂପ
କର୍ମର ଆସକ୍ତି ବିସ୍ମୃତି ଜଗାଏ, ଚିର ଦିନ ବେଦ ରୂପ ॥
କର୍ମକ୍ରିୟା ଯୋଗେ ବ୍ରହ୍ମକୁ ଯେ ଖୋଜେ
ବ୍ରହ୍ମ ପାରେ ନାହିଁ ଦେଖି
ପ୍ରେମମାର୍ଗ ପରେ ଚାଲଇ ଯେ ପ୍ରେମୀ ବ୍ରହ୍ମ ସିଏ ଥାଏ ଦେଖି ॥

॥ ତେଇଶ ॥

ପ୍ରେମର ସ୍ୱରୂପ ହେଲେ ବସ୍ତୁରୂପ ପ୍ରେମଭାବ ମନେ ସ୍ଫୁରେ
ବସ୍ତୁ ଦୃଷ୍ଟିହୀନ ବ୍ୟକ୍ତି କ'ଣ କେବେ ଆନେ ପ୍ରେମ କରିପାରେ ॥
ଚନ୍ଦ୍ରସୂର୍ଯ୍ୟ ଗୁଣ ରୂପର ଉଦୟ
ପାଇନାହିଁ ଯା'ର ମନ
ଗୁଣାତୀତ ବ୍ରହ୍ମ କିପରି ଜାଣିବ ଜାଣିବ ସେ ଭଗବାନ ॥

॥ ଚବିଶ ॥

ତରଣୀ ଆକାଶ ପ୍ରକାଶର ତେଜ ଯିଏ ପାରି ନାହିଁ ଜାଣି
ଦିବ୍ୟ ଦୃଷ୍ଟିହୀନ ବ୍ରହ୍ମର ସ୍ୱରୂପ ମନେ କିବାପାରେ ଆଣି ॥
ଶୁଣ ଶ୍ୟାମ ସଖା ଦିବ୍ୟଚକ୍ଷୁ ବିନା
କେ ଦେଖିବ ବ୍ରହ୍ମରୂପ
ବିଶ୍ୱାସ ତା'ମନେ ଉପୁଜିବ କାହୁଁ ଆଗରେ ତା' କର୍ମ କୂପ ॥

॥ ପଚିଶ ॥

ଶୁଣ ବ୍ରଜବାଳି ! କହଇ ଉଦ୍ଧବ କର୍ମ ପଥେ ମୁକ୍ତି ଆସେ
କର୍ମ ଛାଡ଼ି କ'ଣ କେବେ କେଉଁଦିନ କର୍ମହୀନ ହୋଇବସେ ॥
କର୍ମ କରି କରି ନିଷ୍କାମ ଭାବ
ମନରେ ଉଦୟ ହୁଏ
ନିଷ୍କାମ ଆତ୍ମାରେ ନିରିଗୁଣ ବ୍ରହ୍ମ ଆସନ ଜମାଇ ଥାଏ ॥

॥ ଛବିଶ ॥

ହରିଙ୍କର ଯଦି କିଛି କର୍ମ ନାହିଁ କାହୁଁଥାନ୍ତି କର୍ମ ଫାଶେ
ଯଦି ସେ ନିର୍ଗୁଣ ବସ୍ତୁର ନିର୍ମାଣ କରିଛନ୍ତି କେଉଁ ଆଶେ ॥
ଇୟତା ତାଙ୍କର କଳପନା କଲେ
ବିଶେଷତା ରହେ ନାହିଁ
ନିର୍ଗୁଣ ଅତୀତ ସଗୁଣ ସକଳ ବ୍ରହ୍ମାଣ୍ଡରେ ଅଛି ରହି ॥

॥ ସତେଇଶ ॥

ଗୁଣମୟ ଯେତେ ପଦାର୍ଥ ଦେଖୁଛ ନଶ୍ୱର ସେ ଗୋପାଙ୍ଗନେ
ପରଂବ୍ରହ୍ମ କୃଷ୍ଣ ଅଚ୍ୟୁତ ଅନନ୍ତ ଏହା ରଖିଥାଅ ମନେ ॥
ସେହି ବ୍ରହ୍ମ ଜ୍ୟୋତି ଇନ୍ଦ୍ରିୟ ମାଧ୍ୟମେ
ପାରିବ କିଏ ସେ ଦେଖି
ସୁଦ୍ଧ ତୁଲ୍ୟ ଜ୍ଞାନ ଯା'ମନେ ରହିଛି ବ୍ରହ୍ମରୂପ ପାରେ ଆଙ୍କି ॥

॥ ଅଠେଇଶ ॥

ଶୁଣ ଶ୍ୟାମ ସଖା ନାସ୍ତିକ ଯେ ଲୋକ ନାହିଁ ନିଜ ରୂପ ଜାଣି
ସୂର୍ଯ୍ୟଙ୍କ ପଛରେ ନ ଧାଇଁ ପାରିସେ ଛାୟା ପଥେ ଥାଏ ଧାଇଁ ॥
ଆମ୍ଭ ମନେ ଆନ ନ ଦିଶଇ ଭଲ,
ଏକ ମାତ୍ର ସେହି ରୂପ
କରତଳ ପରେ ଯଦି କେ ଦେଖାଏ କୋଟି ବ୍ରହ୍ମଙ୍କ ସ୍ୱରୂପ ॥

॥ ଅଣତିରିଶ ॥

ଏହିପରି ଯୁକ୍ତି ଉଦ୍ଧବ ସହିତ କରୁଥିଲା ବେଳେ ଗୋପୀ
ହୃଦୟେ ଆଙ୍କିଲେ ଶ୍ରୀକୃଷ୍ଣ ମୂରତି ତାମ୍ବୁଳ ରଞ୍ଜିତ ଛବି ॥
ହରିଙ୍କର ସାଥେ ମାନସ ମିଳନ
ଉଦ୍ଧବଙ୍କୁ ଆଡ଼ କରି
ପଦ୍ମରୂପୀ ନେତ୍ରୁ ଅତି ଆନନ୍ଦରେ ପ୍ରେମାଶ୍ରୁ ପଡ଼ିଲା ଝରି ॥

॥ ତିରିଶ ॥

କହନ୍ତି ହେ ନାଥ ଆହେ ଉମାନାଥ ଯଦୁବଂଶ କୁଳ ସାଇଁ
ତୁମରି ବିହୁନେ ନିରାଶ୍ରିତ ହୋଇ ଘରକୁ ଫେରନ୍ତି ଗାଈ ॥
ହୃଦେ ଦୟା ବହି କାହିଁକି ପେରୁନା
ନେବାକୁ ତାଙ୍କର ତତ୍ତ୍ୱ
ଆଶ୍ରୟ ଦିଅ ହେ ! ଦୁଃଖର ସାଗରେ ଯେଣୁ ଭ୍ରମେ ଆମ ଚିତ୍ତ ॥

॥ ଏକତିରିଶ ॥

କିଏ କହେ ପ୍ରଭୁ ଦରଶନ ଦେଇ ପୁଣି ଯାଉଅଛ ଛପି
ତୁମ ବିନା ଆମେ କେଉଁଠି କିପରି ବଞ୍ଚିବୁ କୁହ ତ ଗୋପୀ ॥
ପାଶେ ତୁମ ଆମେ ବିକି ଅଛୁ ମନ
ତେଣୁ କୁହ କଥାଦୀନ
ଜଳ ବିନା କେବେ ବଞ୍ଚିଛି କି ପ୍ରଭୁ ପରାଧୀନ ଯେଣୁ ମୀନ ॥

॥ ବତିଶ ॥

ଆନ କିଏ କହେ ଦରଶନ ଦିଅ ତୋଳ ତୁମ ମଧୁସ୍ୱନ
ବନେ ବନେ ଲୁଚି କଟା ଘା'ପରେ କାହିଁ ଲେପୁଅଛ ଚୂନ ?
କୋଟି କୋଟି ଆମେ ହେଲେ ମଧ ପ୍ରିୟ
ତୁମେ ଆମପାଇଁ ଏକ
ଆମ ପ୍ରୀତି ଡ଼ୋରି ନକାଟ କୃଷ୍ଣ ହେ ଜୀବନ ହେଲାଣି ଧିକ ॥

॥ ତେତିଶ ॥

କିଏ କହେ ଶ୍ୟାମ ପାଇଗଲା ଯେଣୁ ମଧୁରାର ରାଜପଦ
ପ୍ରଭୁତାର ଲୋଭେ ଅହେତୁକ ଗର୍ବେ ହୁଏ ସିନା ଗଦ ଗଦ ॥
ଏପରି ପ୍ରଭୁତା ମନେ ରଖ କୃଷ୍ଣ
ନୁହେଁ ବଡ଼ ଅଧିକାର
ବଡ଼ ଲୋକ ସିନା ଡ଼ରିଲେ ଡ଼ରିବେ ଅବଳାଙ୍କ ନାହିଁ ଡ଼ର ॥

॥ ଚଉତିରିଶ ॥

କେଉଁ ଗୋପୀ କହେ ଏପରି ମରଣ ଥିଲ ଯେବେ ତୁମେ ଚାହିଁ
ଗୋବର୍ଦ୍ଧନ ଗିରି ଧାରଣ ପୂର୍ବକ ରକ୍ଷାକଲ ପ୍ରଭୁ କାହିଁ ?
ସର୍ପର ଅନଳ କାଳୀୟ ମୁଖରୁ
ହସି ହସି ରକ୍ଷା କଲ
ଏବେ କିନ୍ତୁ ପ୍ରଭୁ ବିରହ ଜ୍ୱାଳାରେ ମନମୀନ ମାରି ଦେଲ ॥

॥ ପଞ୍ଚତିରିଶ ॥

କିଏ କହେ ଶ୍ୟାମ ନିଷ୍ଠୁର ହେଲେବି ପାପ ତାକୁ ଲାଗେ ନାହିଁ
ପାପପୁଣ୍ୟ ତା'ର ହାତର ବିଧାନ ପାପୀ ହେବ ସିଏ କାହିଁ ?
ଆନ କିଏ କହେ କେ ଦେଇ ପାରିବ
ତା ନିର୍ଦ୍ଦୟ ରୂପଚିତ୍ର
କ୍ଷୀର ପିଉ ପିଉ ପ୍ରାଣ ଉଡ଼ିଗଲା ପୁତନା ହୋଇଲା ମୃତ ॥

॥ ଛତିଶ ॥

କିଏ କହେ ମିତ ଆଜି ନୁହେଁ କୃଷ୍ଣ ନିଷ୍ଠୁର ଅନେକ ବେଳୁ
ରାମ ଅବତାରେ ଏହିପରି କାମ କରିଛନ୍ତି କାଳ କାଳୁ
ଯଜ୍ଞ ସମାପନେ ଯାଉଥିଲେ ଯେବେ
ବିଶ୍ୱାମିତ୍ରଙ୍କ ସମୀପ
ବାଟରେ ହରିଲେ ତାଡ଼କା ଜୀବନ ରଘୁବଂଶ କୁଳଦୀପ ।

॥ ସତତିରିଶ ॥

ଆଲୋ ସଖୀଶୁଣ ଏ ଧର୍ମ ପୁରୁଷ ସ୍ତ୍ରୀରୀ ବସେ ରଖେ ମନ
ଅସ୍ତ୍ରଶସ୍ତ୍ରେ ବୀର ବଡ଼ ଧୁରନ୍ଧର ଲଗାଏ ଲକ୍ଷ୍ୟ ସନ୍ଧାନ ॥
ସୀତାଙ୍କ କଥାରେ ବଢ଼ିଲା ମନରେ
ସୂପର୍ନଖା ପ୍ରତି କୋପ
ଭୁଲି ଲୋକ ଲାଜ ଛେଦିଲେ ତା ଅଙ୍ଗ କି କହିବି ତାଙ୍କ ପାପ ?

॥ ଅଠତିରିଶ ॥

କିଏ କହେ ଶୁଣ ଶ୍ରୀକୃଷ୍ଣଙ୍କ ଗୁଣ ଆହୁରି ଅନେକ ଆଲି
ବଳି ରାଜା ପାଶେ ଭୂମି ମାଗିବାକୁ ଯାଇଥିଲେ ବନମାଳି ॥
ଦାନ ଆଣିବାର ସମୟେ କ୍ଷଣିକେ
ପରବତ ରୂପ ଧରି
ପିଠି ପରେ ପାଦ ରଖି ନିରିଦୟେ ପାତାଳେ ଚାପିଲେ ହରି ॥

॥ ଅଣଚାଳିଶ ॥

କିଏ କହେ ମିତ ପର୍ଶୁରାମ ରୂପେ ମାରିଥିଲେ ନିଜମାତା
ଫାର୍ଶାସ୍କନ୍ଧେ ଧରି ଏକୋଇଶ ଥର କ୍ଷତ୍ରିୟ ମାରିବା କଥା ॥
କୁଣ୍ଡେ ରକ୍ତଭରି ସେ ରକ୍ତ ତର୍ପଣ
କରିଥିଲେ ନିଜ ପିତ୍ର
ତେଣୁ ଆଜି ନାହିଁ ବର୍ଣ୍ଣିବାକୁ ତାଙ୍କ ନିର୍ଦ୍ଦୟ ରୂପର ଚିତ୍ର ॥

॥ ଚାଳିଶ ॥

ପୁଣି କିଏ କହେ ହିରଣ୍ୟ କରିଲା ଅବା କେଉଁ ଅପରାଧ
ଦୁଷ୍ଟ ପ୍ରହଲ୍ଲାଦ ପିତା ପାଶେ ଯେଣୁ କରିଥିଲା ଅପରାଧ ॥
ଦେବାପାଇଁ ପୁତ୍ରେ ସମୁଚିତ ଶିକ୍ଷା ପିତା ଖମ୍ବେ ଥିଲେ ବାନ୍ଧି ।
ନରସିଂହ ରୂପେ ହୃଦ ବିଦାରିଲେ ବିନାଦୋଷେ ମହାଛନ୍ଦି ॥

॥ ଏକଚାଳିଶ ॥

କିଏ କହେ ସଖୀ ଶିଶୁପାଳ ରାଜା କରିଥିଲେ କେଉଁ ଦୋଷ
ବିବାହର ଲାଗି ଯାଇଥିଲେ ଦିନେ ଭୀଷ୍ମଦେବଙ୍କର ଦେଶ ॥
ପରିଜନ ମେଳେ ହେଉଥିଲେ ଯେବେ
ନୃପତି ଆନନ୍ଦେ ସଜ
ସ୍ୱାର୍ଥପଣେ ତାଙ୍କ କନ୍ୟାଙ୍କୁ ଚୋରିଲେ ଦୁଃଖେ ଘାରିହେଲେ ରାଜା।

॥ ବୟାଳିଶ ॥

ପ୍ରେମାବଶେ ଗୋପୀ ଭାବ ବିଭୋରରେ ହେଲେ ପ୍ରେମେ ଅନୁରାଗୀ
ପ୍ରିୟ ତୁମ ରୂପ ବିଭିନ୍ନ ଚରିତ କ୍ଷଣେ ହୃଦେ ନେଲେ ଆଙ୍କି ॥
ପ୍ରତି ଲୋମକୂପେ ବ୍ୟାପିଗଲେ ହରି
ହୃଦହେଲା କୃଷ୍ଣମୟ
ଭୂତ ଭବିତବ୍ୟ ଜାଣିଲେ ନିଶ୍ଚିତ ଯେଣୁ କୃଷ୍ଣେ ଅଛି ଲୟ ॥

॥ ତେୟାଳିଶ ॥

ଦେଖି ତାଙ୍କ ପ୍ରେମ ନିୟମ ଉଦ୍ଧବ ସଂଶୟ ହୋଇଲା ଦୂର
ନିଜେ ଯେ ଅଜ୍ଞାନ ଏଇ କଥା ଭାବି ଲାଜେ ନଇଁଗଲା ଶୀର ॥
ମନରେ ଭାବିଲା ଗୋପୀ ପଦରଜ
ମଥାପରେ ବୋଲି ହେବି
ତିନି ଭୁବନର ଆନନ୍ଦ ବିସର୍ଜି କୃତକୃତ ହେଉଥିବି ॥

॥ ଚଉରାଳିଶ ॥

ଯଦି ମୁଁ ପାରିବି ଶ୍ୟାମ ଗୁଣ ଗାନେ ଗୋପୀ ମନକରି ଖୁସି
କୃଷ୍ଣ ପ୍ରେମ ଭକ୍ତି ଲଭିବି ନିଶ୍ଚୟ ମନ ମୁନ ଯିବ ରସି ॥
ଗୋପୀମନ ଖୁସି କରିବା ପାଇଁକି
କରିବି ଉପାୟ କିଛି

ଚିତ୍ତ ସୁଦ୍ଧ ହେବ ହୃଦୟରୁ ଦେବି ଦ୍ୱିବିଧା ସନ୍ଦେଶ ପୋଛି ।।

।। ପଞ୍ଚଚାଳିଶ ।।

ଏ ସମୟେ ଏକ ଭ୍ରମର କେଉଁଠୁ ସେଠାକୁ ଆସିଲା ଧାଇଁ
ବ୍ରଜ ବନିତାଙ୍କ ଚତୁପାର୍ଶ୍ୱେ ହର୍ଷେ ଘୁଣୁଘୁଣୁ ଗୀତ ଗାଇ ।।
ଗୋପୀଙ୍କ ପଦକୁ ରକ୍ତୋତ୍ପଳ ଭାବି
ଇଚ୍ଛାକଲା ଯାନ୍ତା ବସି
ଉଦ୍ଧବର ମନ ମଧୁପର ବେଶେ ସତେ ଉଡୁଥିଲା ହସି !

।। ଛୟାଳିଶ ।।

ଭ୍ରମରର ପ୍ରତି ପ୍ରତ୍ୟୁତ୍ତର ଭାବେ ଗୋପୀ ଆରମ୍ଭିଲେ କଥା
ତର୍କ ବିତର୍କରେ ପ୍ରେମରସ ପୂର୍ଣ୍ଣ ସମ୍ଭାଷଣମୟ ବାର୍ତ୍ତା ।।
ଆମ ପଦସ୍ପର୍ଶ କରନା ଭ୍ରମର
ଆନନ୍ଦ ରସର ଚୋର
ତୁମ ପରି ପରା କପଟ ଅଟନ୍ତି ନାଗର ନନ୍ଦ କିଶୋର ।।

।। ସତଚାଳିଶ ।।

କେ କହେ ମଧୁପ ଲଜ୍ଜାହୀନ ଦେଖି ମନେ ଆସୁଅଛି ହସ
ଯେଣୁ ତୁମ ସ୍ୱାମୀ ପରିଚିତ ଆଜି ଶ୍ୟାମ କୁବୁଜାର ଦାସ ।।
ଗୋପୀଙ୍କର ନାଥ ହୋଇସିନା କୃଷ୍ଣ
ପାଇଥିଲେ ଉଚ୍ଚ ପଦ

କୁବୁଜାର ଦାସ ଏବେ ହେଲେ ବୋଲି ଯଦୁକୁଳେ ଅପବାଦ ॥

॥ ଅଠଚାଳିଶ ॥

ଆରେରେ ମଧୁପ ! କିଏ ତୋତେ କହେ ଅଟୁ ତୁହି ମଧୁକାରୀ
ଗଣ୍ଡିଲିରେ ଧରି ବିଷ-ତୁଲ-ଯୋଗ ବୁଲୁ ପ୍ରେମୀବନ୍ଧକାରୀ ॥
ଅନେକଙ୍କ ରକ୍ତ କରି କରି ପାନ
ଅଧର ତୋହର ଲାଲ
ଏବେରେ ମଧୁପ ବ୍ରଜକୁ ଆସିଛୁ କା'ରେ ଫିଙ୍ଗିବାରେ ଜାଲ ॥

॥ ଅଣଞ୍ଚାଶ ॥

କେ କହେ ମଧୁପ ଶ୍ୟାମଙ୍କର ବେଶ ଆସିଛୁରେ ଧରି କାହିଁ
ଶ୍ୟାମବର୍ଣ୍ଣ ରୂପ ନିକ୍ୱଣର ସ୍ୱନ କଟୀ ପୀତାମ୍ବର ପରି ॥
ମଥୁରାରୁ କ୍ଷୀର ଚୋରିକରି କାହିଁ
ଆସିଅଛୁ ବ୍ରଜ ପୁର
ବିଶ୍ୱାସ ନ କର ମଧୁପରେ ସହି ଏତ ଶ୍ୟାମବେଶୀ ଚୋର ॥

॥ ପଚାଶ ॥

କେ କହେ ମଧୁପ ଆମ ପାଶେ କାହିଁ କରୁଅଛୁ କୃଷ୍ଣଗାନ
କପଟୀ ହୃଦୟେ ପରମ ପ୍ରେମର ରହିଛି କି କେବେ ସ୍ଥାନ ॥
ଜାଣି ଅଛ ହରି ସର୍ବସ୍ୱ ଆମର
କିପରି କରିଲେ ଚୋରି
କଥାରେ ତୋହର ପରତେ ଯିବାକୁ ନାହାଁନ୍ତି ବ୍ରଜନାଗରୀ ॥

॥ ଏକାବନ ॥

କେ କହେ ମଧୁପ ପ୍ରେମର କଥାକୁ କିପରି ପାରିବୁ ଜାଣି
ବହୁ ଫୁଲେ ବସି ନିଜ ପରି ପରା ଅପରକୁ ଥାଉ ମଣି ॥
ଆରେ ମତିମନ୍ଦ ଗୋପୀମନେ ଜାତ
କରି ପ୍ରେମେ କରୁଛନ୍ଦ
ଦୁଇବିଧ ପ୍ରେମେ ଦୂଷିତ କରିବୁ ଆମମନ ପ୍ରେମାନନ୍ଦ ॥

॥ ବାବନ ॥

କେଉଁ ଗୋପୀ କହେ ପ୍ରେମର ସୁଖକୁ ମଧୁପହିଁ ଜାଣିଥିଲା
ଆଜି ଯାଏଁ ସତେ ! ବ୍ରଜଦେଶେ ସଖୀ କିଏ କ'ଣ ବୁଝିଥିଲା ?
ସୁଖରେ ତାହାର ଦୁଇସିଙ୍ଗ ସହ,
ଶରୀରତ କଳା ପୀତ
ଅମୃତକୁ ଦେଖି ଡ଼ରଇତ ସିଏ, ଖଳକୁ ମାନେ ଅମୃତ ।

॥ ତେପନ ॥

କେ କହେ ମଧୁପ ବଡ଼ ନିରିଗୁଣ ଜାଣିଥାଅ ସବୁଗୋପୀ
ତର୍କ ବିତର୍କରେ ପ୍ରସିଦ୍ଧି ଲଭିଛି ବହୁଛନ୍ଦେ କରି ଯୁକ୍ତି ॥
ହେଲେ ଯେତେ ଜ୍ଞାନୀ ପାରିନିତ ଜାଣି
ବସ୍ତୁବିନା ଗୁଣ ନାହିଁ
ଯଦି ନିରିଗୁଣ କିପରି ସଗୁଣ ପୃଥିବୀରେ ଥାନ୍ତି ରହି ॥

॥ ଚଉବନ ॥

ଆନ କେଉଁ ଗୋପୀ କୁହଇ ମଧୁପ କୃଷ୍ଣ ସଙ୍ଗେ ହୋଇ ସଙ୍ଗୀ
ସଙ୍ଗ ଦୋଷେ ତୁମେ କଥା କହିବାରେ ଅଟ ବଡ଼ ଚତୁରଙ୍ଗୀ ॥
ଉପହାସେ କିଏ କୁହଇ ଗୋକୁଳେ
କୃଷ୍ଣ ଅନୁରୂପ ଯୋଡ଼ି
ନ ହେଲେ କୁବୁଜା ସାଥେ ବୃଥା କୃଷ୍ଣ ପ୍ରେମେ ଯାଇଥାନ୍ତେ ପଡ଼ି ॥

॥ ପଞ୍ଚାବନ ॥

ଆନ କିଏ କହେ ଶୁଣରେ ମଧୁପ ଶ୍ୟାମ ଯୋଗୀ ତୁହି ଚେଲା
କୁବୁଜା ତୀର୍ଥର ଗୁରୁଶିଷ୍ୟ ଦୁହେଁ ଲଗାଇଛ ମେଳା ଭଲା ॥
ମଧୁରାରେ ତୁମ ଲୀଳାର ପ୍ରଚାର
ସାରି ଆସିଅଛ ଗୋପେ
ପ୍ରେମୀଜନ ସବୁ ଏଠାରେ ଅଛନ୍ତି ତୁମ ଲୋକ ନାହିଁ ଥୋକେ ॥

॥ ଛପନ ॥

କେଉଁଗୋପୀ କହେ ମଧୁବନ ସାଧୁ ଏହିପରି ଯଦି ହେବେ
ତେବେ ସେଠାକାର ସିଦ୍ଧପୁରୁଷ ସାଧୁଠାରୁ ବଳି ଯିବେ ॥
ଯେତେକ ଅଗୁଣ କରି ଆପଣାର
ଗୁଣ ଦେଉଥାନ୍ତି ଛାଡ଼ି
ଏପରି ସାଧୁଙ୍କ ମେଳରେ ଶ୍ରୀକୃଷ୍ଣ ନିର୍ଗୁଣରେ ଗଲେ ପଡ଼ି ॥

॥ ସତାବନ ॥

ଆଉ କିଏ କହେ ଆରେରେ ମଧୁପ ବିପରୀତ ଜ୍ଞାନ ନେଇ
କର୍ମମାର୍ଗ କଥା ମୁକ୍ତିର ପଥିକେ କେଉଁ ଲାଭେ ଥାଅ କହି ?
ବେଦ ନିଷଦର ସାରତତ୍ତ୍ୱ ରୂପେ
ଯିଏ ମାନୁଛନ୍ତି ହରି
ଯୋଗ ପାଠଶାଳେ ଆତ୍ମଶୁଦ୍ଧି ପାଠ ନ କୁହ ପାଶେ ତାଙ୍କରି ॥

॥ ଅଠାବନ ॥

କିଏ କହେ ସହି ବିଶ୍ୱଭୁବନରେ ରହିଛନ୍ତିକଳା ଯେତେ
ମନତାଙ୍କ କଳା ହୃଦୟ କପଟ ନଯିବ କେବେ ପରତେ ॥
ଏକ ଶ୍ୟାମ କୃଷ୍ଣ ଶରୀର ପରଶେ
ଅଙ୍ଗ ଆମ ନିତି ଜଳେ
ଉଦ୍ଧବର ପୁଣି ଯୋଗ ରୂପୀ ସର୍ପ ହୃଦୟକୁ ଆମ ଜାଳେ ॥

॥ ଅଣଷଠି ॥

କେ କହେ ମଧୁପ ଅନୁରାଗୀ ବୋଲି କହୁଅଛି କିଏ ତୋତେ
କେଉଁଗୁଣ ତୋର ଆନର ଆଦର ଜଣାନାହିଁ କିଛି ମୋତେ ॥
ଶରୀର ତୋହର ପାପର ସମ୍ଭାର
ପାଉ ଜଗତରେ ନିନ୍ଦା
ଗୁଣ ଅବଗୁଣ ନିଜେ ତୁ ଅଳିନ୍ଦ କୂଟ କପଟରେ ଛନ୍ଦା ॥

॥ ଷାଠିଏ ॥

ଏହିପରି ଗୋପୀ ସୁମରି ଗୋବିନ୍ଦ ଉଦ୍ଧବକୁ ଥିଲେ ବୋଲି
ଭ୍ରମରର ରୂପେ ଶ୍ରୀକୃଷ୍ଣ ସୁମରି କୁଳ ଲଜ୍ଜା ଗଲେ ଭୁଲି
ତା'ପରେ ନୟନୁ ଆନନ୍ଦରେ ଅଶ୍ରୁ
ଝରାଇଲେ ବ୍ରଜନାରୀ
କହିଲେ କୃଷ୍ଣହେ, ହେ କରୁଣାମୟ ! ରକ୍ଷାକର ଦଇତାରି ।

॥ ଏକଷଠି ॥

ଶ୍ରୀକୃଷ୍ଣ ସ୍ମୃତିରେ ଗୋପୀଙ୍କର ନେତ୍ରୁ ଅଶ୍ରୁବହେ ସିନ୍ଧୁସମ
କମଳ ସଦୃଶ ନେତ୍ର ଜଳାଧାର ଆଭୂଷଣ କଲା ସିକ୍ତ ॥
ଗୋପାଙ୍ଗନାଙ୍କର ପ୍ରେମ ସମୁଦ୍ରରେ
ଉଦ୍ଧବ ବି ଗଲାଭାସି
ମନେ ମନେ ଭାବେ ଗୋପୀ ସମହେଲି ଆଜି ବ୍ରଜଧାମ ଆସି ॥

॥ ବାଷଠି ॥

ଏତାଦୃଶ ଶୁଦ୍ଧଭକ୍ତି ପ୍ରକାଶିତ ଦେଖି ପ୍ରେମ ପରିପାଟୀ
ଉଦ୍ଧବର ମନେ ଥିଲା ଯେତେ ଗ୍ଳାନି କ୍ଷଣିକରେ ଗଲାତୁଟି ॥
କହୁଥିଲା ମନେ ନିଷ୍ଠେ ଗୋପାଙ୍ଗନେ
ହରି ରସ ଅଛି ମିଳି
କୃତକୃତ ହେଲି ଅଜ୍ଞାନ ସମୁଦ୍ରୁ ନଷ୍ଟ ହେଲାଜ୍ଞାନ ମଳି ॥

॥ ତେଷଠି ॥

ଏକାନ୍ତ ସ୍ଥାନରେ ନିର୍ଗୁଣ ବ୍ରହ୍ମର ଉପଦେଶ ଦେବା ପାଇଁ
ଉଦ୍ଧବ କହଇ ବାରମ୍ବାର ହରି ମୋତେ ରହିଥିଲେ କହି ॥
ସେ କଥା ରହସ୍ୟ ନ ବୁଝି ପାରି ମୁଁ
ଜ୍ଞାନ କର୍ମ କଥା ଆଜ
ଯେତେ ବୁଝାଇଲେ ନ ବୁଝନ୍ତି ଗୋପୀ ନାହିଁ ଯେଣୁକୁଳ ଲାଜ ॥

॥ ଚଉଷଠି ॥

ଯିଏ କୁଳଧର୍ମ ମାନ ଛାଡ଼ି ଦେଇ କୃଷ୍ଣେ କରୁଥାନ୍ତି ଧ୍ୟାନ
ପରମ ଆନନ୍ଦ ପ୍ରିୟ ପ୍ରିୟଙ୍କର ତାର ପ୍ରେମେ ଥାଏ ମନ ॥
ଜ୍ଞାନ ଯୋଗ ସବୁ କର୍ମ ପରେ ସିନା
ପ୍ରେମ ହୋଇଥାଏ ସତ୍ୟ
କାହିଁ ସମକକ୍ଷ ହେଲାଣିକି କାଚ ହୀରା ପାଶେ ଥିଲେ ନିତ୍ୟ ॥

॥ ପଞ୍ଚଷଠି ॥

ଧନ୍ୟ ଧନ୍ୟ ଏହି ଜନ ଗୋକୁଳର ଯିଏଥାନ୍ତି ଭଜି ହରି
ଯା'ଙ୍କ ବିନୁ କୃଷ୍ଣ ପ୍ରେମରସ ଆନ ହୃଦୟେ ନ ହୁଏ ଧରି ॥
ମୋର ହୃଦୟରେ କ୍ଷୁଦ୍ରଜ୍ଞାନ ବ୍ୟାଧି
ପାଇଥିଲା ଯେଣୁ ସ୍ଥାନ
ବ୍ରଜ ପ୍ରେମସମ ଅଧା ପ୍ରେମଭାବ ଛୁଇଁ ନ ଥିଲା ମୋ ମନ ॥

॥ ଛଅଷଠି ॥

ଉଦ୍ଧବ କହଇ ଗୋପୀ ପାଦସ୍ପର୍ଶ ପ୍ରଥମେ ଦୂରେଇଥିଲି
ଭ୍ରମରା ଡ଼ାକରେ ତାଙ୍କଠାରୁ କେତେ ଗାଳିନିନ୍ଦା ସହିଥିଲି ॥
ଏବେ ବ୍ରଜଦାଣ୍ଡେ ଆନନ୍ଦ ମନରେ
ଧୂଳି ହୋଇ ରହିଥିବି
ଯେ ଭକ୍ତ ଚରଣ ମୁନିଙ୍କୁ ଦୁର୍ଲଭ ସ୍ପର୍ଶ ତା'ର ପାଉଥିବି ॥

॥ ସତଷଠି ॥

କିମ୍ବା ଏଇ ବୃନ୍ଦାବନେ ଗୁଳ୍ମଲତା ରହିଥିବି ମୁହିଁ ହୋଇ
ଯିବା ଆସିବାର ବେଳେ ଗୋପୀଙ୍କର ପଡ଼ିବ ଉପରେ ଛାଇ ॥
କିନ୍ତୁ ଏଇ କଥା ନାହିଁ ମୋ ହାତରେ
ଉପାୟ କିଛି କରିବି
ଯେବେ ପ୍ରଭୁ କୃଷ୍ଣ ହୋଇବେ ପ୍ରସନ୍ନ ଏଇବର ମାଗୁଥିବି ॥

॥ ଅଠଷଠି ॥

ପୁନଶ୍ଚ ଉଦ୍ଧବ କହେ ଶୁଣ ଭାଇ ସାଧୁ ସଙ୍ଗ ଅଟେ ଭଲ
ପରଶ ସ୍ପର୍ଶରେ ଲୌହ ହୁଏ ସ୍ୱର୍ଣ୍ଣ ସାଧୁ ସଙ୍ଗ ଗୁଣ ତୁଲ ॥
ଗୋପୀ ଜନଙ୍କର ପ୍ରେମପରସାଦେ
ଉଦ୍ଧବରୁ ମଧୁକର
ହୋଇ ମୋ ମନରୁ ଦ୍ୱିବିଧା ଯୋଗର ସଂଶୟ ହୋଇଛି ଦୂର ॥

॥ ଅଣସ୍ତରି ॥

ମଥୁରା ମାର୍ଗରେ ଫେରଇ ଉଦ୍ଧବ ଛାଡ଼ି ଗୋପୀଙ୍କର ସଙ୍ଗ
କଣ୍ଠ ଗଦ୍ ଗଦ ପୁଲକିତ ରୋମ ଅବଶ ହୁଅଇ ଅଙ୍ଗ ॥
ଗାଉ ଗାଉ ଗୋପୀ ଗୁଣ କୃଷ୍ଣମିତ
ପାଶୋରିଲା କୃଷ୍ଣଗୁଣ
ଏଇ ମୋ ଜୀବନେ କି କର୍ମ କରିବି ହେଲେ ଭକ୍ତିମୟ ପ୍ରାଣ ॥

॥ ସତୁରି ॥

ଏହିପରି ଭାବେ ଉଦ୍ଧବ ଭେଟିଲା ଯହିଁଥିଲେ କୃଷ୍ଣମିତ
କହିଲା ବିନୟେ ପରିକ୍ରମା କରି ବାଢ଼ି ପୂତ ପ୍ରଣିପାତ ॥
କୃଷ୍ଣଙ୍କ ନିର୍ଦ୍ଦୟ ପଣଯୋଗୁଁ ଚକ୍ଷୁ
ହେଲା ତା'ର ବିସ୍ଫାରିତ
ପୁଣି ଗୋପାଙ୍ଗନା ସ୍ମରଣେ କୁହଇ ଶୁଣ ଆହେ ନନ୍ଦସୂତ !

॥ ଏକସ୍ତରି ॥

ହେ କରୁଣାମୟ ରସିକତା ତୁମ ସବୁଠାରୁ ବଡ଼ ମିଛ
ନିରେଖି ଦେଖିଲେ ତୁମ ମିଛ ପଣ ଆପେ ହୋଇଯାଏ ସ୍ୱଚ୍ଛ ॥
ଜାଣିଅଛି ଆଜି ଯାଇ ବ୍ରଜପୁରୀ
ତୁମ ନିରିଦୟ ଭାବ
ଯେ ଜନ ଖୋଜଇ ଆଶ୍ରୟ ତୁମର ପାଏ ନାହିଁ କୃପା ତବ ॥

॥ ବାଣ୍ଡରି ॥

ପୁଣି ପୁଣି କହେ ହେ ଶ୍ୟାମ ସୁନ୍ଦର ବୃନ୍ଦାବନ ଯାଇଁ ରୁହ
ପରମ ପ୍ରେମର ମୂର୍ତ୍ତି ଗୋପଙ୍ଗନେ ସଙ୍ଗ ତାଙ୍କ ପାଉ ଥାଅ ॥
ସବୁଜନଙ୍କର ମେଳ ଛାଡ଼ି ଦେଇ
ଗୋପୀଗଣେ ସୁଖ ଦିଅ
ଗୋପୀ ସ୍ନେହଡ଼ୋରି ଛିଡ଼ିଗଲେ କୃଷ୍ଣ ଯାହାହେବ ଭାବି ନିଅ ॥

॥ ତେଷ୍ଟରି ॥

ମିତ୍ର ଉଦ୍ଧବର ବଚନ କୃଷ୍ଣଙ୍କ ନୟନେ ଭରିଲା ନୀର
ଗୋପୀ ପ୍ରେମାବସେ ନିଜ ବୁଦ୍ଧିସୁଦ୍ଧି ହଜିଗଲା ବାର ବାର ॥
ଶରୀରରେ ତାଙ୍କ ପ୍ରତି ଲୋମକୂପେ
ଗୋପଗୋଇ ହେଲେ ଜାତ
କାମଦେବ ବୃକ୍ଷେ ଲତା ରୂପୀ ଗୋପୀ ହେଲେ ଶତ ପଲ୍ଲବିତା।

॥ ଚଉଷ୍ଠରି ॥

ଉଦ୍ଧବେ ଶ୍ରୀକୃଷ୍ଣ କହନ୍ତି ହେ ସଖା ଗୋପୀଙ୍କ ଖବର ପାଇଁ
ଭଲା ପଠାଇଲି ଅବଗୁଣ ମୋର ମୋ ଆଗେ ବସିଲ କହି ॥
ମନେରଖ ସଖା ଟିକିଏ ତଫାତ
ନାହିଁ କୃଷ୍ଣ ଗୋପୀ ମଧ୍ୟେ
ଯେପରି ଦେଖୁଚ ଗୋପୀ ମୋ ହୃଦୟେ ମୁହିଁ ପରା ତାଙ୍କ ହୃଦେ।

॥ ପଞ୍ଚସ୍ତରି ॥

ଏଥୁ ଅନ୍ତେ କୃଷ୍ଣ ନିଜ ଶରୀରୁ ଦେଖାଇଲେ ଏକ ଗୋପୀ
ସେ ଛବି ଦର୍ଶନେ ଉଦ୍ଧବ ମନର ମାୟାଗଲା ହୃଦେ ଛପି ॥
ନିଜ ଲୀଳା ହରି ଦେଖାଇ କ୍ଷଣିକେ
କ୍ଷଣିକରେ କଲେ ଶେଷ
ଧନ୍ୟ ହେଲେ ବର୍ଣ୍ଣି କବି ନନ୍ଦଦାସ କୃଷ୍ଣ ପ୍ରେମମୟ ରସ ॥





**ସ ମା ପ୍ତ**





## ଲେଖକଙ୍କ ବିଷୟରେ ପଦେ...

ଓଡ଼ିଶାର ଜଣେ ଲବ୍ଧପ୍ରତିଷ୍ଠିତ ସାହିତ୍ୟିକ ଓ ଶିକ୍ଷାବିତ୍ ରୂପେ ଡ଼ଃ ଦିଗରାଜ ବ୍ରହ୍ମା ସୁପରିଚିତ । ତାଙ୍କ ରଚିତ ପୁସ୍ତକଗୁଡ଼ିକ ଜୀବନଧର୍ମୀ ଓ ପ୍ରାଣସ୍ପର୍ଶୀ । ବିଶେଷତଃ ଶିଶୁ ସାହିତ୍ୟ ପ୍ରସ୍ତୁତି, ପାଠ୍ୟପୁସ୍ତକ ପ୍ରଣୟନ ଓ ଗବେଷଣା କ୍ଷେତ୍ରରେ ଡ଼ଃ ବ୍ରହ୍ମାଙ୍କର ସ୍ଥାନ ସ୍ୱତନ୍ତ୍ର ।

ଡ଼ଃ ବ୍ରହ୍ମା ଛାତ୍ରାବସ୍ଥାରୁ ରାଜ୍ୟର ବହୁ ଅଗ୍ରଣୀ ଅନୁଷ୍ଠାନ ସହିତ ସଂଶ୍ଳିଷ୍ଟ । ୧୯୭୦ ମସିହାରେ ସେ ରେଭେନ୍ସା ମହାବିଦ୍ୟାଳୟ ପୂର୍ବାଛାତ୍ରବାସର ମୁଖପତ୍ର ''ଜାଗରଣ''ର ସମ୍ପାଦନା ଦାୟିତ୍ୱ ନେଇଥିଲେ । ସେ ସମୟରେ ଡ଼ଃ ବ୍ରହ୍ମାଙ୍କ ରଚିତ ଉପନ୍ୟାସ 'ସେ ମନ ବିହଙ୍ଗୀ', ସମାଲୋଚନା ପୁସ୍ତକ 'ମହାପୁରୁଷ ହାଡ଼ିଦାସ' ଓ କବିତା ପୁସ୍ତକ 'ପ୍ରଭାତୀ ତାରା' ପ୍ରକାଶ ଲାଭ କରିଥିଲା । ପରବର୍ତ୍ତୀ ସମୟରେ ଡ଼ଃ ବ୍ରହ୍ମାଙ୍କ ରଚିତ ଶିଶୁ ପୁସ୍ତକ 'ଆସ ସଙ୍ଗାତ ବଣକୁ ଯିବା', 'ଚକା ଚକା ଭଉଁରୀ', 'ଶିକ୍ଷା ଦୁନିଆର କଥା ରାଇଜ', 'ପଣ୍ଡିତ ନୀଳକଣ୍ଠ', 'ବଜାରେ ବଜା ବାଜାବାଲା ଓ 'ସୂର୍ଯ୍ୟମୁଖୀ' ଆତ୍ମପ୍ରକାଶ ଲାଭ କରିଅଛି ।

ଡ଼ଃ ବ୍ରହ୍ମା ଇତିହାସରେ ଏମ୍.ଏ., ଶିକ୍ଷାରେ ଏମ୍.ଏଡ୍ ଓ ଶିଶୁ ସାହିତ୍ୟର ଶିକ୍ଷାଗତ ପ୍ରୟୋଗ ସନ୍ଦର୍ଭ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡ଼ି. ଡ଼ିଗ୍ରୀ ଲାଭ କରିଛନ୍ତି । ଏତଦ୍‌ବ୍ୟତୀତ ଡ଼ଃ ବ୍ରହ୍ମା ଶିକ୍ଷା ଟେଲିଭିଜନ କାର୍ଯ୍ୟକ୍ରମ ପ୍ରସ୍ତୁତି ସମ୍ପର୍କରେ ବିଲାତର କାର୍ଲଲାଇଲ୍ ଓ ଜନସଂଖ୍ୟା ପ୍ରକଳ୍ପ ପରିଚାଳନାରେ ବ୍ୟାଙ୍କକ୍‌ସ୍ଥିତ ଧୂରକଜୀ ପଣ୍ଡିତ ବିଶ୍ୱବିଦ୍ୟାଳୟରୁ ମଧ୍ୟ ସ୍ୱତନ୍ତ୍ର ଯୋଗ୍ୟତା ହାସଲ କରିଛନ୍ତି ।

ଡ଼ଃ ବ୍ରହ୍ମାଙ୍କ ଜନ୍ମ ଟାଙ୍ଗୀ-ଚୌଦ୍ୱାରସ୍ଥିତ ଇତିହାସ ପ୍ରସିଦ୍ଧ ଜଲୌକା ପାହାଡ଼ ପାଦଦେଶରେ ଅବସ୍ଥିତ ରୁଦ୍ରପୁର ଗ୍ରାମରେ । ସଂପ୍ରତି ସେ ପଟିଆ ରେଳଷ୍ଟେସନ୍ ନିକଟସ୍ଥ ମହାବୀର ବିହାରଠାରେ ଅବସ୍ଥାନ କରୁଛନ୍ତି ।